# ପାଉଁଜି

ଲେଖିକା : ଶ୍ରୀମତୀ ଦୀପ୍ତି ଦାସ
ପ୍ରଥମ ସଂସ୍କରଣ : ୧୯୯୭
ପ୍ରକାଶନ ସଂଖ୍ୟା : ଏସ୍.ଆର୍.ସି. ୧୯୪ - ୨୬/୯୭
ମୁଦ୍ରଣ ସଂଖ୍ୟା : ୨୦୦୦
ପ୍ରକାଶକ : ଡଃ. ବିମଳେନ୍ଦୁ ମହାନ୍ତି,
ନିର୍ଦ୍ଦେଶକ,
**ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**
ଭୁବନେଶ୍ୱର - ୭୫୧ ୦୦୧
ମୁଦ୍ରଣ : ନିସ୍ୱାସ, ଭୁବନେଶ୍ୱର - ୭୫୧ ୦୧୬
ମୂଲ୍ୟ : ତିନିଟଙ୍କା ପଚାଶ ପଇସା ମାତ୍ର ।

# PAUNJI

Author : Smt. Dipti Das
First Edition : 1997
Publication No. : SRC - 194 -26/97
No. of Copies : 2,000
Published by : Dr. Bimalendu Mohanty,
Director
**State Resource Centre for Adult Education, Orissa**, Bhubaneswar - 751 001
Printed at : NISWASS, Bhubaneswar - 751 016
Price : Rupees Three and Paise Fifty Only

# ପାଉଁଜି

ସୁରିଆ ବିଲରୁ ହଳକାମ ସାରି ଫେରିଛି ।

ଗୋଡ଼ ହାତ ଧୋଇ ଗାମୁଛା କାନିରେ ମୁହଁ ପୋଛୁ ପୋଛୁ ମୁରୁକି ମୁରୁକି ହସୁଛି ।

ସୁରିଆ ଗରିବ । ହେଲେ ସରଳ ମଣିଷ ଟିଏ । ଧୋବେଇ ତା ମୁହଁକୁ ଚାହିଁ ସବୁ ଭୁଲିଯାଏ । ସୁରିଆର ହସିଲା ହସିଲା ମୁହଁକୁ ଦେଖିଦେଲେ ଧୋବେଇର ପେଟ ପୂରିଯାଏ । କିଛି ଗୋଟାଏ ଖୁସି କଥା ମନକୁ ଆସିଲେ ଧୋବେଇ ଆଗରେ କହିବସେ । କହିବା ଆଗରୁ ଆପେ ଆପେ ହସି ପକାଏ ।

ଧୋବେଇକୁ ସୁରିଆର ସବୁ କଥା ଜଣା । ସେ ହସି ହସି ପଚାରିଲା - " ହଳ ସାରି ବିଲରୁ ଫେରିଲ । ଖରାରେ ମୁହଁଟା ଶୁଖି

କଳା ପଡ଼ିଯାଇଛି । ସେଥିରେ ପୁଣି ଏତେ ହସ ବାହାରୁଚି କୁଆଡୁ ମ ? କ'ଣ ହେଇଚି କି ? ଓହୋ ଆଜି କାଳିଆ, ମାଳିଆ ତୁମ ବୋଲ ମାନି ଦି'ଗାର ଅଧିକ ଚଷି ଦେଇଥିବେ ପରା । କାଲି ଖାଇବାରେ ତାଙ୍କର ଟିକିଏ ବି ଉଣା ହୋଇନଥିଲା । ଘାସ, ପେଜ, ତୋରାଣି ପେଟ ପୂରା ଖାଇବାକୁ ଦେଇଥିଲି । କାଳିଆଟା ଟିକେ ଅଝଟିଆ । ତା'ଦେହରେ ହାତ ନ ବୁଲାଇଲେ, ଟିକେ ଗେଲ ନକଲେ ଖାଇବନି । ମାଳିଆଟା ସେମିତି ନୁହେଁ । ଢକ୍ ଢକ୍ କରି ଏକା ଦମ୍‌ରେ ପିଇଦିଏ ।''

ଧୋବେଇର କଥା ଶୁଣି ସୁରିଆ ମୁରୁକି ମୁରୁକି ହସୁଥିଲା । ଧୋବେଇ ପୁଣି କହିଲା - '' ଜାଣିଛି ଜାଣିଛି । ଆଜି କ୍ଷେତକୁ ଗଲାବେଳେ ବାଟରେ ନେଉଳଟିଏ ଦେଖିଛି ।''

ସୁରିଆ ନେଉଳକୁ ଖୁବ୍ ଭଲ ପାଏ । ଯେଉଁ ଦିନ ସେ ନେଉଳଟିଏ ଦେଖିଥାଏ, ତା' ମନ ସେଦିନ ତମାମ ଖୁସି ରହେ । କେତେଥର ଧୋବେଇକୁ କହିଛି, ନେଉଳଟିଏ ପାଳିବ ବୋଲି । ହେଲେ ଧୋବେଇ ମନାକରେ । କହେ - '' ମୁଁ ବି ନେଉଳକୁ ଭଲ ପାଏ । ହେଲେ ଅକାରଣରେ ଜୀବଟାକୁ କାହିଁକି କଷ୍ଟ ଦେବା ? ସିଏ ତ କେତେ ମନ ଖୁସିରେ ବଣ ବୁଦାରେ ଡେଇଁ ଡେଇଁ ବୁଲୁଛି, ଖେଳୁଛି । ଯାଇଛା ତାହା ଖାଉଛି । ସେଇତକ ଦେଖିଦେଲେ ଆମ ମନ ଖୁସିରେ ପୂରି ଉଠୁଛି । ''

ସୁରିଆ ହସୁଛି । କାହିଁକି ହସୁଛି ? ଧୋବେଇକୁ କିଛି କହୁ ନଥାଏ । ଧୋବେଇ କିନ୍ତୁ ତା'ମନ କଥାଟି ଜାଣିବାକୁ ମନ କରୁଥାଏ । ଧୋବେଇ କହିଲା - ''ହଉ ଚାଲ, ଚାଲ । ତୁମେ ଆଗ ଖାଇବ ଚାଲ ।''

ଧୋବେଇ ସୁରିଆକୁ କଂସାଏ ପଖାଳ, ମେଞ୍ଚାଏ ଶାଗ ବାଢ଼ିଦେଲା । ତା ପାଖରେ ବସିପଡ଼ିଲା । ସୁରିଆ ଖାଇ ବସେ । ଧୋବେଇ ତା ପାଖରେ ବସେ । ଯେଉଁଦିନ ତା ପାଖରେ ନ ବସେ ସେ ଦିନ ସେ ଭାବେ, ସୁରିଆର ପେଟ ପୂରି ନଥିବ । ତେଣୁ ସୁରିଆ ଖାଇସାରି କାମକୁ ଗଲା ପରେ ଧୋବେଇ ତା'ଘର କାମରେ ହାତ ଦିଏ ।

ଧୋବେଇ ପାଖରେ ବସିଲେ ସୁରିଆକୁ ଭଲ ଲାଗେ । ତା' ବୋଉ ଥିଲା ବେଳେ ପାଖରେ ଏମିତି ବସୁଥିଲା । କାଳେ ପେଟ ପୂରି ନଥିବ ବୋଲି ଯୋର କରି ଅଧିକ ଦି ମୁଠା ଖୁଆଇ ଦେଉଥିଲା । ତା' ବାପାକୁ ସେ ଦେଖିନଥିଲା । ବୋଉ ଥିଲା ତା'ର ସବୁ କିଛି । ହଠାତ୍ ଦିନେ ବୋଉ ମରିଗଲା । ସୁରିଆ ଘରକୁ ଏକା । ଗାଁବାଲାମାନେ ମିଶି ଧୋବେଇ ସହିତ ସୁରିଆର ହାତକୁ ବିହାତ କରିଦେଲେ । ଧୋବେଇ ତା'ଘରକୁ ବୋହୂ ହୋଇ ଆସିଲା । ଘରଟା ତା'ର ସେଇ ଦିନଠୁ ଯେମିତି ସରଗ ପାଲଟି ଯାଇଛି । ଦି'ଜଣଙ୍କ



ହସ ଖୁସିରେ ଟିକି ଘରଟି ଉଚ୍ଛୁଳି ପଡୁଥାଏ । ସମସ୍ତେ ସେମାନଙ୍କୁ କହନ୍ତି 'ବଗ ବଗୁଲି' ।

ସୁରିଆ ଶାଗ ପଖାଳ ଖାଉ ଖାଉ ଧୋବେଇ ପୁଣି କହିଲା– ''ହେଇତି, ଶୁଣୁଚ ଟି ! ଆମ ପୁଷିର ଆଜି ଗୋଟିଏ ପୁଅ ଓ ଗୋଟିଏ ଝିଅ ହୋଇଛି ।''

ସୁରିଆ ହସି ଦେଇ କହିଲା - '' ଆଉ ଆମର .... ? ଆମର ଗୋଟାଏ ଦରକାର । ସେ ପୁଅ ହେଉ ବା ଝିଅ ହେଉ ।''

ସୁରିଆର କଥା ଶୁଣି ଧୋବେଇ ଟିକିଏ ଲାଜେଇ ଗଲା । କହିଲା - "ସେ ବାଜେ କଥା ଛାଡ଼ । ତୁମେ ଏବେ କୁହ କ'ଣ ପାଇଁ ହସୁଥିଲ ।"

ସୁରିଆ କହିଲା - "କହିବି ଯେ, ମୁଁ ଟିକେ ଖାଇସାରେ । ବଢ଼ିଆ କଥାଟିଏ କହିବି ।"

ଖାଇସାରି ସୁରିଆ କହିଲା - " ଧୋବେଇଲୋ ! ପିଠାପୁର ଗାଁରେ ଆଜି ଜାଗର ମେଳା । ତୋତେ ଦେଖାଇ ନେବି ଭାବିଛି । ଯିବୁ ନା ? ଅନେକ ଦିନରୁ ଭାବୁଛି ତୋ' ପାଇଁ ଗୋଟାଏ ଭଲ ଜିନିଷ କିଣିବି ବୋଲି । ଆଉ ଗୋଟେ କଥା — ଆଜି ସଂଜରେ ସେଠିକି ପାଲା ଗାୟକ ଆସିବେ । ତା'ଙ୍କଠୁଁ ପାଲା ଶୁଣିଲେ ତୁ ଆଉ ମୋଟେ ସେଠୁ ଉଠି ପାରିବୁନି ।"

ଧୋବେଇ ମୁହଁ ଶୁଖାଇ କହିଲା - " ନାହିଁଲୋ ମା ... । ପାଲା ମୁଁ ମୋଟେ ଶୁଣି ପାରିବିନି ।"

ସୁରିଆ କହିଲା - "କାହିଁକି ?"

ଧୋବେଇ କହିଲା - " ମୋତେ ଭାରି କାନ୍ଦ ଲାଗେ । ଥରେ ମୋ ନାନୀ ସହିତ ପାଲା ଶୁଣିବାକୁ ଯାଇଥିଲି । ସୀତା ବନବାସ କଥା ଯେତେବେଳେ ଗାଇଲା, ମୋ ଛାତି ଭିତରଟା କ'ଣ ହୋଇଗଲା । ମୋ ଛାତି ଯେମିତି ଫାଟିପଡ଼ିଲା । ଭୋ ଭୋ ହୋଇ

କାନ୍ଦିଲି । ମୋ ନାନୀ ମତେ ବହୁତ ବୁଝାଇଲା । ମୋ କାନ୍ଦ ସରିଲାନି । ଶେଷରେ ନାନୀ ମୋତେ ଧରି ଘରକୁ ଫେରି ଆସିଲା ।''

ସୁରିଆ ହସିଦେଇ କହିଲା - '' ଆଲୋ ହୁଣ୍ଡି ! ସବୁଦିନେ ଖାଲି ସୀତା ବନବାସ ପାଲା ହେଉଥିବ କି ? ଆହୁରି କେତେ ପାଲା ଅଛି । ତୁ ସଜବାଜ ହୋଇପଡ଼ । ମୁଁ ଚେମି ମାଉସୀ ଘରୁ ଆସୁଛି । ତା' ଦେହ ଭଲ ନଥିଲା । ବିଚାରୀର କେହି ନାହିଁ, ତା ମୁଁହରେ ଟୋପେ ପାଣି ଦେବାକୁ ।

ମୁଁ ବିଲକୁ ଯାଇଥିଲି । ସେ ତା ଦୁଆର ମୁଁହରେ ଘୋଡ଼ି ଘାଡ଼ି ହୋଇ ବସିଥିଲା । ମୋତେ କେମିତି କେମିତି ଲାଗିଲା । ମୁଁ ଯାଇ ଦେଖେତ ତାତିରେ ତା ଦେହ ଫାଟି ପଡୁଛି । ମୁଁ ତା'ମୁଁହ, ହାତ ଧୋଇ ଦେଲି । ମୁଢ଼ି ଦିଟା ଧୋଇ ଦେଲି । ତାକୁ ଖାଇବାକୁ ଦେଲି । ସେ ଖାଇଲା । କେମିତି ଅଛି କେଜାଣି, ଟିକେ ଦେଖି ଆସେ ।''

ଧୋବେଇ ଦେହରେ ହଳଦି ତେଲ ଲଗାଇଲା । ମୁଗୁନି ପଥରଟିଏ ନେଇ ପୋଖରୀ ତୁଠକୁ ଗଲା । ଗୋଡ଼ ହାତ ମାଜି ଗାଧୋଇ ଆସିଲା ।

ସୁରିଆ ଚେମି ମାଉସୀ ଘରୁ ଫେରି ଆସିଲା । କହିଲା - ''ଚେମି ମାଉସୀ ଦେହ ଟିକିଏ ଭଲ ଅଛି । ଚାଲ ମେଳାକୁ ଯିବା ।''

ଦିହେଁ ସଜବାଜ ହୋଇ ମେଳାକୁ ବାହାରି ପଡ଼ିଲେ । ବେଳ ବୁଡୁ ବୁଡୁ ପିଠାପୁର ଗାଁରେ ପହଞ୍ଚିଲେ । ମେଳାରେ ମନ ମଉଜରେ ବୁଲା ବୁଲି କଲେ । କିଛି ସମୟ ପରେ ପାଲା ଶୁଣିବା ପାଇଁ ବସିଲେ । ପାଳିଆ, ଶୀରି ପାଳିଆମାନଙ୍କର ମଜା ମଜା କଥା ଶୁଣି ସୁରିଆ ଓ ଧୋବେଇ ହସୁଥାନ୍ତି ।

ଏତିକି ବେଳେ ଗାୟକ ପୁରାଣରୁ ଗୀତ ବୋଲି ବୁଝାଉଥିଲେ । ଲକ୍ଷ୍ମୀ ଠାକୁରାଣୀ କେମିତି ଚଣ୍ଡାଳୁଣୀ ଘରେ ପଶିଲେ । ଏମିତି କେତେ କଥା ଶୁଣୁ ଶୁଣୁ ଧୋବେଇ ସକେଇ ଉଠିଲା । ସୁରିଆ ପଚାରିଲା - ‘‘କ’ଣ ହେଲା କିଲୋ ? ଏ’ତ ସୀତା ବନବାସ କଥା ନୁହେଁ । କାନ୍ଦୁଚୁ କାହିଁକି ?’’

ଧୋବେଇ କହିଲା - ‘‘ନାଇଁମ, ଭଲ ଲାଗିଲାତ । ଆଖିରେ ଲୁହ ଆସିଗଲା ।’’

ସୁରିଆ ହସି ଦେଇ କହିଲା - ‘‘କି ମଣିଷଟାଏ ତୁ ! ଦୁଃଖରେ କାନ୍ଦୁଛୁ, ସୁଖରେ ବି କାନ୍ଦୁଛୁ ?’’

ଧୋବେଇ କହିଲା - ‘‘ଏଇ ଠାକୁରାଣୀଙ୍କ କଥା ଭାବୁଛି । ତାଙ୍କର ଜାତି ନାହିଁ । ଛୁଆଁ ଅଛୁଆଁ ବି ନାହିଁ । ତାଙ୍କ ପାଖରେ ସମସ୍ତେ ସମାନ । ଆମେ ସେହି ମା’ ଠାକୁରାଣୀଙ୍କ ପୁଅ-ଝିଅ ନୁହଁ କି ? ତେବେ ଆମ ମନରେ ଏତେ ବାଛ ବିଚାର କାହିଁକି ?’’

ସୁରିଆ କହିଲା - ''ସତେ ଲୋ ..... ଧୋବେଇ ! ଏ ମଣିଷ କ'ଣ ସେ କଥା ବୁଝୁଚି ? ଆମ ସମସ୍ତଙ୍କ ଦେହରେ ପରା ଏକା ରକତ । ଜାତି ଫାତି କୁଆଡୁ ଆସିଲା ? ମଣିଷ ଜାତି ତ ଗୋଟିଏ ଜାତି ।''

ସୁରିଆ ପୁଣି କହିଲା — ''ହଉ, ଉଠ୍ ଉଠ୍ । ପାଲା ଶୁଣିବା ଆଜି ଏତିକିରେ ଥାଉ । ମୁଁ ଯେଉଁ ଜିନିଷ କଥା କହୁଥିଲି ଚାଲ କିଣିବା ।'' ସୁରିଆ ଧୋବେଇକୁ ନେଇ ରତନ ବଣିଆ ଦୋକାନକୁ ଗଲା । ଧୋବେଇ କିଛି ବୁଝିପାରୁ ନ ଥାଏ । ବଲ ବଲ କରି ସୁରିଆକୁ ଖାଲି ଚାହୁଁଥାଏ ।

ସୁରିଆ ରତନ ବଣିଆକୁ ହଳେ ପାଉଁଜି ଦେଖେଇବାକୁ କହିଲା । ବଣିଆ କେତେ ହଳ ପାଉଁଜି ସୁରିଆକୁ ଦେଖାଇଲା । ସୁରିଆ ତା ମନଲାଖି ପାଉଁଜି ହଳେ ବାଛିଲା ।

ପାଉଁଜି ହଳକ ସୁରିଆ, ବଣିଆ ହାତକୁ ବଢ଼ାଇ ଦେଇ ଦାମ୍ ପଚାରିଲା ।

ବଣିଆ ଓଜନ କଲା । ପାଉଁଜିର ଦାମ୍ ଦୁଇଶହ ଟଙ୍କା ବୋଲି କହିଲା । ସୁରିଆର ମନ ଟିକେ ମଉଳି ଆସିଲା । ଏତେ ଟଙ୍କା ସେ କୋଉଠୁ ଆଣିବ ? ତା ପାଖରେ ତ ମୋଟ ଶହେ ସତୁରୀ ଟଙ୍କା ଅଛି । କିନ୍ତୁ ପାଉଁଜିଟି କିଣିବାକୁ ତାର ଭାରି ଇଚ୍ଛା ।

ସୁରିଆ କହିଲା — "ରତନ ଭାଇ ! ମୋର ଗୋଟିଏ କଥା ରଖିବ ?"

ବଣିଆ କହିଲା — "କି କଥା ? କହନ୍ତୁ । ରଖିବା କଥା ହୋଇଥିଲେ ରଖିବି ।"

ସୁରିଆ କହିଲା — "ମୋ ପାଖରେ ତ ଏତେ ଟଙ୍କା ନାହିଁ । ଶହେ ସତୁରୀ ଟଙ୍କା ଅଛି । ସେତକ ରଖ । ପାଉଁଜି ହଳକ ଦିଅ । ଆଉ ଟଙ୍କା ପରେ ଶୁଝି ଦେବି ।"

ରତନ କହିଲା — "ଧାର ବାକି ତ ମୁଁ କାହାକୁ ଦଉନି ।"

ଧୋବେଇ ସୁରିଆକୁ କହିଲା — "ଚାଲ, ଘରକୁ ଯିବା । ପାଉଁଜି ଦରକାର ନାହିଁ । ପଇସା ହେଲେ କିଣିବା ।"

ସୁରିଆ ଧୋବେଇ କଥା ଶୁଣିଲା । ମାତ୍ର ମନକଲା, ଯେମିତି ହେଲେ ଆଜି ସେ ପାଉଁଜି ହଳେ ନେବ ।

ସୁରିଆ ପୁଣି କହିଲା — "ରତନ ଭାଇ ! ମୋ କଥା ଟିକେ ରଖ । ଦିନ କେଇଟାରେ କାମ ଦାମ କରି ଏ ଟଙ୍କା ଶୁଝି ଦେବି ଯେ ! ଦିଅ ଜିନିଷଟା । ଭାରି ମନ ହେଇଚି ନବାକୁ । ପିଲାଟି ଦିନରୁ ପରା ତୁମମାନଙ୍କ ଘରେ କାମଦାମ କରୁଛି । କେବେ କା'ର ପଇସା ମୁଁ ରଖିଚି ବୋଲି ତମେ ଜାଣିଚ --- ?"

ରତନା କ'ଣ ଭାବିଲା କେଜାଣି ସୁରିଆ କଥାରେ ରାଜି ହୋଇଗଲା । ପାଉଁଜି ହଳକ ସୁରିଆ ହାତକୁ ବଢ଼ାଇ ଦେଲା । ସୁରିଆ ଶହେ ସତୁରୀ ଟଙ୍କା ରତନାକୁ ଗଣି ଦେଲା । ମନ ଖୁସିରେ ସୁରିଆ ଧୋବେଇ ଦୋକାନରୁ ଉଠି ଆସିଲେ ।

ଧୋବେଇ ସୁରିଆକୁ କହିଲା – "ମୁଁ ପରା ତାଳ ପତର ବିଂଚଣା ଓ ପଥୁରିଟିଏ ମେଳାରୁ କିଣିବି ବୋଲି କହିଥିଲି ?"

ସୁରିଆ କହିଲା – "ଆଜି ମୋ ପାଖରେ ଆଉ ପଇସା କାହିଁ ? ପରେ କେବେ କିଣି ଦେଲେ ହବନି ?"

ଧୋବେଇ କହିଲା – "ହଉ, ଠିକ୍ ଅଛି । ଆଚ୍ଛା ମତେ ସେଦିନ ତମେ କିଛି ପଇସା ଦେଇଥିଲ । ତାକୁ ମୁଁ ରଖିଛି । ଖର୍ଚ୍ଚ କରିନି । ଚାଲ ସେଇ ପଇସାରେ ବିଂଚଣାଟିଏ କିଣିନବା ।"

ସେମାନେ ବିଂଚଣାଟିଏ କିଣିଲେ । ପରେ ପରେ ଘରକୁ ବାହାରିଲେ ।

ବାଟରେ ଧୋବେଇ ସୁରିଆକୁ ପଚାରିଲା – "ସତ କହିଲ, ଏତେ ଗୁଡ଼ିଏ ପଇସା ତୁମେ କୋଉଠୁ ଆଣିଲ ? ପାଖରେ ପଇସା ନ ଥିଲା ବୋଲି ପରା କହୁଥିଲ ।"

ସୁରିଆ ହସିଦେଇ କହିଲା – "ଆଲୋ ! ତୋତେ କ'ଣ

ମୁଁ କେବେ କିଛି କଥା ଲୁଚେଇଚି ? ତୋ ପାଇଁ ପାଉଁଜି ହଳେ କିଣିବି ବୋଲି ଠଣାରେ ପରା ପଇସା ରଖୁଥିଲି ।"

ଧୋବେଇ ମନ ଦୁଃଖ କରି କହିଲା – "ତୁମେ ତାହେଲେ ସେଇ ପଇସାରେ ପାଉଁଜି କିଣିଛ ନା କ'ଣ ? ଆମ ଦେହପା, ସୁବିଧା ଅସୁବିଧାରେ ସିନା ତାକୁ ଖରଚ କରିଥାନ୍ତେ । ପାଉଁଜିଟା କିଣି ନ ଥିଲେ କ'ଣ ଚଳି ନ ଥାନ୍ତା ?"

ସୁରିଆ କହିଲା – "ଆମେ କ'ଣ ଟିକେ ଖୁସି କରିବାନି ? ମଉଜ କରିବାନି ? ତୁ ସିନା ମୋତେ କିଛି ମାଗିନାହୁଁ । ହେଲେ ମୋର ତ ପୁଣି ତତେ କିଛି ଦବାର ଅଛି । ବାହା ହେଲା ଦିନଠୁଁ ତତେ ମୁଁ କ'ଣ ଦେଇଚି କହିଲୁ ? ଏଇ ପାଉଁଜି ହଳଟେ ତ ! ତୋ' ଗୋଡ଼ରେ ଏ ହଳଟା ଦେଖିବାକୁ ମୋର ଭାରି ମନ ।"

ଗପ ଚାଲିଥାଏ । ଖୁସି ଗପରେ ବାଟ ସରିଗଲା । ସେମାନେ ଘରେ ପହଞ୍ଚିଗଲେ । ଘରେ ପାଦ ଦେଉ ନ ଦେଉଣୁ ସୁରିଆ କହିଲା – "ଧୋବେଇ ! ତୁ ଆଗ ପାଉଁଜି ନାଇଲୁ । ତୋ ପାଦକୁ କେମିତି ମାନୁଛି ଦେଖେ ।"

ଧୋବେଇ ହାତ ଗୋଡ଼ ଧୋଇ ଆସି ପାଉଁଜି ନାଇ ବସିଲା । ମୁରୁକି ମୁରୁକି ହସୁଥାଏ । ଧୋବେଇର ପାଦରେ ପାଉଁଜି ଦେଖି ସୁରିଆ ମନ ଭାରି ଖୁସି । ତା ସପନ ଆଜି ସତ ହୋଇଛି ।

ସୁରିଆ ଧୋବେଇକୁ କହିଲା - "ଦେଖ୍ ଧୋବେଇ , ଏ ପାଉଁଜି ତୁ ପେଡ଼ିରେ ମୋଟେ ସାଇତି ରଖିବୁ ନାହିଁ । ସବୁବେଳେ ନାଇଥିବୁ । ତୋ ପାଦକୁ ଏ ପାଉଁଜି ହଳକ ଭାରି ବଢ଼ିଆ ମାନୁଛିଲୋ ! ତୁ ମତେ ଆଜି ଭାରି ସୁନ୍ଦର ଦିଶୁଚୁ ।"

ଧୋବେଇ ପାଉଁଜି ହଳକୁ ତା ପାଦରେ ସବୁଦିନେ ନାଇଥାଏ । ଦିନ ଗଡ଼ି ଚାଲିଲା । ଚକ ଚକିଆ ପାଉଁଜି ହଳକ କଳା ପଡ଼ି ଆସିଲା । ଧୋବେଇ ତାକୁ ବହୁତ ମଜାମଜି କରୁଥାଏ । ମାଜିଲେ କ'ଣ ହେବ ? ଶେଷରେ ପାଉଁଜି ହଳକ ପୂରା କଳା ହୋଇଗଲା ।

ଧୋବେଇ ପାଉଁଜି ହଳକ ତା'ପାଦରୁ ଓହ୍ଲାଇ ଦେଲା । ସୁରିଆକୁ ଦେଖାଇ କହିଲା -" ପାଉଁଜି କେମିତି କଳା ଦିଶିଲାଣି ଦେଖତ । ଯେତେ ମାଜିଲେବି ସଫା ହେଉନି । "

ସୁରିଆ ପାଉଁଜି ହଳକ ହାତରେ ଧରିଲା । ଓଲଟ ପାଲଟ କରି ଦେଖୁଥାଏ । ତା'ମନ କେତେ ଆଡ଼କୁ ପାଇଲା । ଭାବିଲା, ରତନା ବଣିଆ ତାକୁ ନକଲିଟାଏ ଠକି ଦେଇଚି କି? ତା'ଦୋକାନ ଆଗରେ ତ ଲେଖା ହେଇଚି "ନକଲି ପ୍ରତି ସାବଧାନ ।" ତା ଛଡ଼ା ସେ'ତ ଠାକୁରଙ୍କୁ ବିଶ୍ୱାସ କରେ । ଠାକୁର ପୂଜା କରେ । ସେ କ'ଣ ଏମିତି ଠକିଥିବ ?

ସୁରିଆ ଅନେକ କିଛି ଭାବିଲା । ଧୋବେଇକୁ ଡାକି କହିଲା– ''ହଉ ତୁ ଏହାକୁ ରଖ । ଆଜି ସଂଜ ବେଳକୁ ମୁଁ ଯାକୁ ବଣିଆ ଘରକୁ ନେଇଯିବି । ସେତ କହିଥିଲା ପାଉଁଜି ହଳକ ଭଲ ପଡ଼ିବ । ଅସଲି ରୂପାରେ ତିଆରି । ଏମିତି କାହିଁକି ହେଲା ପଚାରିବି ।''

ସଂଜ ହୋଇଗଲା । ସୁରିଆ ରତନା ବଣିଆ ଘରେ ପହଞ୍ଚି ଗଲା । ପାଉଁଜି ହଳକ ଥୋଇଦେଇ କହିଲା– ''ଦେଖିଲ ଭାଇ, କେଇଟା ଦିନ ଯାଇନି । ଏଇଟା କେମିତି କଳା ପଡ଼ି ଗଲାଣି ।''

ରତନା ବଣିଆ ପାଉଁଜି ହାତକୁ ନେଇ କହିଲା– ''ଇଏତ ମୋ ଦୋକାନର ଜିନିଷ ନୁହେଁ । କୋଉଠୁ ଆଣି ମୋ ପାଖକୁ ଆସିଚୁ ?''

ସୁରିଆ କହିଲା– ''ପିଠାପୁର ଜାଗର ମେଳାରେ ତମେ ଯାକୁ ମତେ ଦେଇନା ? ତୁମେ ପୁଣି ଆଜି କହୁଚ ଆଉ କୋଉଠୁ ଆଣିଚି ବୋଲି !''

ରତନା ବଣିଆ ରାଗିଯାଇ କହିଲା– ''ଏଇଥି ପାଇଁ ମୁଁ କାହାକୁ ଧାର୍ ବାକି ଦିଏନି । ଖାଲି ନିଜ ଲୋକଟା ବୋଲି ତତେ ଦେଇଥିଲି । ଧାର ପଇସା ତ ଶୁଝି ସାରିନୁ । ସେଥିରେ ପୁଣି ମୋ ନାଁରେ ମିଛ ।''

''ମିଛ ମୁଁ କହୁଛି ନା ତମେ କହୁଚ ''– ସୁରିଆ କହିଲା । ''ଆମେ ସିନା ଗରିବ । ହେଲେ ଆମ ମନ କେବେ ଛୋଟ ନୁହେଁ । ଏଇ ଛୋଟ କଥା ପାଇଁ ମୁଁ ପୁଣି ମିଛ କହିବି ? ବାଇଶି ବରଷ ହେଲା ତୁମ ସାଙ୍ଗରେ ମୋର ଚିହ୍ନା ପରିଚୟ । ମିଛ କହିବି ମୁଁ ? ସେ କଥା ମୋ ଛାତକରେ ନାହିଁ । ''

ସୁରିଆର କିଛି କଥା ଶୁଣିବାକୁ ବଣିଆ ରାଜି ନୁହେଁ । ସେ ପାଉଁଚି ହଳକ ଫୋପାଡ଼ି ଦେଇ କହିଲା -''ନେ,ରଖ୍ ତୋ ପାଉଁଚି । ମୋ ବାକି ପଇସା ମତେ ଦେଇ ଦେ । ତମ ମାନଙ୍କୁ ଦୟା ଦେଖାଇ



ମୁଁ ଭୁଲ୍ କରିଚି । ପାଉଁଜି କଳା ପଡ଼ିଗଲା । ମୁଁ କଣ ସେଥିରେ କଳା ବୋଳି ଦେଇଚି ?''

ସୁରିଆ ପାଉଁଜି ଧରି ଫେରି ଆସିଲା । ମନରେ କେତେ କଣ ଭାବନା । କ'ଣ କରିବ କିଛି ବୁଝି ପାରୁ ନଥାଏ । ଘରେ ଆସି ନଥି କରି ବସି ପଡ଼ିଲା । ଧୋବେଇକୁ ଡାକି ସବୁ କଥା ଗୋଟି ଗୋଟି କରି କହିଗଲା ।

ଧୋବେଇ କହିଲା -''ହଉ ଛାଡ଼ । ଆମେ ତ କିଛି ଅନ୍ୟାୟ କରିନୁ । ଆମ ରକତ ଆଉଟା ପଇସାରେ ଆମେ କିଣିଥିଲୁ । ସେମାନେ ଯଦି ଠକିଲେ ଠକିଲେ । ତାଙ୍କ ଧରମ ତାଙ୍କର । ଦିନ ରାତି ଯିଏ କରୁଚି ସିଏ ଏହାର ବିଚାର କରିବ ।

ସେଇଥିପାଇଁ କହନ୍ତି ପରା-

'ଅଧର୍ମ ବିତ୍ତ, ବଢ଼େ ବହୁତ

ଗଲାବେଳେ ଯାଏ, ମୂଳ ସହିତ ।'

ଏତିକି ବେଳେ ତାଙ୍କ ଘର ଭିତରକୁ ପଶି ଆସିଲା ଦାମ ରାଉତ ବୁଢ଼ା । ଏମାନେ ତା ଆଗରେ ସବୁକଥା କହିଗଲେ ।

ଦାମ ବୁଢ଼ା କହିଲା -''ଏଥିରେ ଆଉ କରିବାର କଣ ଅଛି ? ଏ ଦୁନିଆଟାର ନୀତିଗତି ଦେଖୁନା ! ଜଣେ ଆର ଜଣକୁ ସବୁବେଳେ

ଠକି ଦେବାକୁ ଚାହୁଁଚି । ସେଇ ଠକଙ୍କ ହାବୁଡ଼ରେ ଥରେ ପଡ଼ିଲେ ଆଉ ରକ୍ଷା ନାହିଁ । କେତେ ପ୍ରକାରର ଠକାମି ଚାଲିଛି । ପୁରୁଣା ଜିନିଷକୁ ରଙ୍ଗ କରି ନୂଆ କରିବା । ଖରାପ ଜିନିଷକୁ ପୁଡ଼ିଆ ବା ଡବାରେ ପୂରାଇ ଭଲ ଜିନିଷ କହି ପଇସା ନେବା । ଜିନିଷ ଉପରେ ଲେଖାଥିବା ଦାମ୍ ଠାରୁ ଚଢ଼ା ଦର ନେବା । ଜିନିଷ ଏକା । ଏ ଦୋକାନରେ ଗୋଟାଏ ଦାମ୍ ତ, ସେ ଦୋକାନରେ ଆଉ ଗୋଟାଏ ଦାମ୍ । ରାତା ରାତି ଦର ବଢ଼ିଗଲା କହି ଟଙ୍କାକ ଜିନିଷକୁ ଦି'ଟଙ୍କାରେ ବିକ୍ରି ।''

ଦାମ ରାଉତ ପୁଣି କହିଲା– ''ଆଉ ଶୁଣ, ମୁଁ ପରା ଏମିତି କେତେ ଥର ଠକ ହାବୁଡ଼ରେ ପଡ଼ିଗଲିଣି । ଏଇ କେଇ ଦିନ ତଳର କଥା । ତୋ ମାଉସୀ ପାଇଁ ତୋଳାରାମ ଦୋକାନରୁ ଶାଢ଼ୀ ଖଣ୍ଡିଏ କିଣିଥିଲି । କହିଲା କ'ଣନା - ଶାଢ଼ୀ ଛିଡ଼ିଯିବ ପଛକେ ରଙ୍ଗ ଛାଡ଼ିବନି । ଜିନିଷ ବି ଖୁବ୍ ମଜଭୁତ ପଡ଼ିବ । ହେଲେ ଥରେ ଧୋଇ ଦେଲୁତ ରଙ୍ଗ ଛାଡ଼ି ସଫା । ଦିନ କେଇଟାରେ ଲୁଗାଟା ବି ଚିରିଗଲା ।

ମୁଁ ତାକୁ ଯାଇ ଏ କଥା କହିଲି । ସେ କ'ଣ କହିଲା ଜାଣୁ ? ସେ କହିଲା- 'ଆମେ କ'ଣ କରିବୁ ? ମୁଁତ ଏଠି କଳ ପକେଇନି କି ଲୁଗା ତିଆରି କରୁନି । ଆମେ କିଣିଚୁ,ବିକିଚୁ ।' ତମ କପାଳକୁ ଶାଢ଼ୀ ଖରାପ ପଡ଼ିଲା । ଏଇଟା କ'ଣ ମୋ ଦୋଷ ?

ଆଉ ଥରକର କଥା- ଏଇ ଲୁଣ କଥା । ସେଦିନ ମୋ ନାତି ଟୋକା କହିଲା ପୁଡ଼ିଆ ଲୁଣ ଆଣିବା ପାଇଁ । ସେଇ ଲୁଣ ଖାଇଲେ କୁଆଡ଼େ ଦେହକୁ ଉପକାର । ସେଥିରେ ଆୟୋଡ଼ିନ୍ ବୋଲି କ'ଣ ଗୋଟାଏ ଜିନିଷ ଅଛି । ଖାଇଲେ ଗଳା ରୋଗ ହେବ ନାହିଁ । ଟୋକାଟାର କଥା ମାନି ଦୋକାନୀଠୁଁ ମୁଁ ସେଇ ଲୁଣ କିଣି ଆଣିଲି । ମୋଠୁଁ ସେ ଚାରି ଟଙ୍କା ନେଲା ।

ଆସୁ ଆସୁ ବାଟରେ ଆମ ଦନେଇ ପୁଅ ମକରା ଦେଖାହେଲା । ମୋ ହାତରୁ ଲୁଣ ପୁଡ଼ିଆଟି ନେଇ କଣ ଦେଖିଲା । ମୋତେ ପଚାରିଲା, କେତେ ଦେଇ ଆଣିଲ ? ମୁଁ କହିଲି, ଚାରିଟଙ୍କା । ସଙ୍ଗେ ସଙ୍ଗେ ସେ କହିଲା- 'କାହିଁକି ? ଏଥିରେ ତ ତିନିଟଙ୍କା ଲେଖା ହେଇଚି ।'

ଏକଥା ଶୁଣି ମୁଁ ଫେରିଗଲି । ଦୋକାନୀକୁ କହିଲି– 'ତିନିଟଙ୍କା ଲେଖା ଯାଇଛି । ତୁମେ ମୋ'ଠୁ ଚାରିଟଙ୍କା ନେଇ ?' ଦୋକାନୀ କହିଲା– 'ଦାମ୍ ବଢ଼ି ଯାଇଛି । ଆମେ କ'ଣ କରିବୁ ?'

ସେତିକିବେଳେ ଗୋପୀ ସାହୁ ପୁଅ ଗଣେଶ ସେବାଟେ ଯାଉଥିଲା । ସେ ସହରରେ ରହି ପାଠ ପଢେ । ଛୁଟିରେ ଗାଁକୁ ଆସିଥିଲା । ପଚାରିଲା, 'କ'ଣ ସବୁ ଗପସପ ଚାଲିଛି ?'

ଗଣେଶକୁ ପାଖରେ ବସେଇ ଏମାନେ ସବୁକଥା କହିଲେ ।

ଗଣେଶ ସେମାନଙ୍କ କଥା ଶୁଣି କହିଲା-"ଜାଣିନା କି, ଏବେ ପରା ଖାଉଟିମାନଙ୍କ ପାଇଁ କେତେ ସବୁ ନୂଆ ଆଇନ୍ ତିଆରି ହେଲାଣି । ପାଠ ଶାଠ ପଢ଼ିନ ବୋଲି କିଛି ଜାଣି ପାରୁନ । ସେଇଥିପାଇଁ ସେମାନେ ତୁମକୁ ଠକିବାରେ ଲାଗିଛନ୍ତି । ତୁମେମାନେ ତ କୂଅ ବେଙ୍ଗ ପରି ରହିଛ ।"

ଗଣେଶର କଥା ଶୁଣି ସୁରିଆ ପଚାରିଲା– 'କଣ ଟିକେ କହିଲୁ ଗଣେଶ । ଆମକୁ ଟିକେ ବୁଝାଇ କହ ।'

ଗଣେଶ କହିଲା- " ଏଇ ଖାଉଟିଆ ବଦ୍‌ମାସ ଲୋକଙ୍କ ଦାଉରୁ ଖାଉଟିମାନଙ୍କୁ ରକ୍ଷା କରିବା ପାଇଁ 'ଖାଉଟି ସୁରକ୍ଷା ଆଇନ୍' ହେଇଚି । ଆମ ରାଜ୍ୟରେ ୧୯୮୮ରୁ ଏହା ଲାଗୁ ହୋଇଛି । ତମ ସୁବିଧା ପାଇଁ ସବୁ ଜିଲ୍ଲାରେ ଗୋଟିଏ ଗୋଟିଏ ବିଚାରପୀଠ କରାଯାଇଛି । ଦୋକାନୀ ପୁରୁଣା ଜିନିଷକୁ ନୂଆ କହି ବିକିଲେ ବିଚାରପୀଠକୁ ଜଣେଇ ଦିଅ । ଖରାପ ଜିନିଷ ବିକିଲେ ବିଚାରପୀଠକୁ ଜଣାଅ । ଠିକ୍ ଦାମ୍ ନ ନେଇ ବେଶୀ ଦାମ୍ ନେଲେ ସେହିପରି ଜଣେଇ ଦିଅ । ସେଠି ତାର ଠିକଣା ବିଚାର ହେବ ।"

ସେ ପୁଣି କହିଲା- "ବିଚାରପୀଠକୁ ଜଣେଇବାରେ କିଛି ପଇସା ପଡ଼ିବ ନାହିଁ । ଏଥିରେ ଓକିଲ ଦରକାର ନାହିଁ । ଏଭଳି

ଦରଖାସ୍ତ ନିଜେ ନିଜେ କରିପାରିବ । ଏହା ଯଦି ଏକଲକ୍ଷ ଟଙ୍କାର କିଣାବିକା ହୋଇଥାଏ, ତାହେଲେ ଏ ବିଚାର ଜିଲ୍ଲା ବିଚାରପୀଠରେ ହୋଇପାରିବ ।''

ସୁରିଆ ପଚାରିଲା– ''ଏମିତି ଜଣେଇଲେ ଖାଉଟିକୁ କ'ଣ ମିଳିବ ? ଖାଉଟିର ଲାଭ କ'ଣ ?''

ଗଣେଶ କହିଲା- ''ଭଲ କଥାଟିଏ ପଚାରିଲ । ଶୁଣ । ଖାଉଟିକୁ କ୍ଷତି ପୂରଣ ମିଳିବ । ଖରାପ ଜିନିଷ ଫେରେଇ ଦେଇ ଭଲ ଜିନିଷ ପାଇବ । ସେ ବାବଦରେ ଦେଇଥିବା ପଇସା ବି ଫେରି ପାଇବ ।''

ଦାମ ରାଉତ ବୁଢ଼ା ଟିକେ ଆଗକୁ ଝୁଙ୍କି ଆସି ପଚାରିଲା- ''ଆରେ ଗଣେଶ ! ତ୍ରୁଟି ସୁଧାରିବା କଥା କ'ଣ କିରେ, ଟିକେ କହିଲୁ ?

ଗଣେଶ କହିଲା– ''ଧରାଯାଉ କେହି ଖାଉଟି ଚାଷ କରିବା ପାଇଁ ପାଣି ପମ୍ପଟିଏ କିଣିଚି, ବିଜୁଳି ମଟରଟିଏ କିଣିଚି, ଘର ପାଇଁ ବିଜୁଳି ପଂଖାଟିଏ ନେଇଚି, ଟେଲିଭିଜନଟିଏ ବା ରେଡିଓଟିଏ ଆଣିଛି । ସେଥିପାଇଁ ବର୍ଷେ କିମ୍ବା ଦୁଇ ବର୍ଷ ଭିତରେ ଏଥିରେ ଯଦି କିଛି ଅସୁବିଧା ହୁଏ ତାକୁ ସେ ଦୂର କରିବ ବୋଲି ଦୋକାନୀ ତାକୁ କହିଚି ବା ଲେଖିଦେଇଚି । ସେଇ ସମୟ ଭିତରେ ସେଥିରେ କିଛି

ଦୋଷ ଦେଖାଗଲା । ଦୋକାନୀକି ସେ କଥା କୁହାଗଲା । ସେ କିନ୍ତୁ ସେ କଥା ଶୁଣିଲା ନାହିଁ । ସେ କଥା ବିଚାରପୀଠକୁ ଜଣାଇ ଦେଇପାରିବ । ଆଉ ଗୋଟିଏ କଥା- ଧର ସେବାପାଇଁ ଆମେ କିଛି ପଇସା ଦେଉଛୁ । ଯାହାଙ୍କୁ ଦଉଚୁ ସେମାନେ ଯଦି ସେ ବାବଦରେ କିଛି ନ କରନ୍ତି, ସେଥିସକାଶେ ବିଚାର ପୀଠକୁ ଯାଇହେବ ।''

''ସେବା କ'ଣ ?'' ସୁରିଆ ପଚାରିଲା ।

ଗଣେଶ କହିଲା– ''ଆମେ ବସ୍‌ରେ ଯାଉଚେ । ଆମେ ରେଳଗାଡିରେ ଯାଉଚେ । ସେଥିପାଇଁ ଆମେ ପଇସା ଦଉଚେ । ରେଳଗାଡ଼ିରେ ଥିବା ପାଇଖାନା ସଫା ହେଉନି, ଆମ ବସିବା ଜାଗାରେ ଜିନିଷ ଥୁଆ ହେଉଚି, ଡବା ଭିତର ସଫା ହେଇନି । ଏସବୁ ଅସୁବିଧା କଥା ଆମେ ବିଚାରପୀଠକୁ ବିଚାର କରିବାକୁ ଜଣାଇ ପାରିବା ।

ଅନେକ ସମୟରେ ବିଜୁଳି ବାଲା, ବ୍ୟାଙ୍କ ବାଲା, ବୀମାବାଲା, ଫୋନ୍ ବିଭାଗ, ହୋଟେଲ୍, ଲଜିଂବାଲା ଆମକୁ ଅସୁବିଧାରେ ପକାନ୍ତି । ଏଥିପାଇଁ ମଧ୍ୟ ଆମେ ଏ କଥା ବିଚାର-ପୀଠକୁ ଜଣେଇ ଦେଇପାରିବା ।''

ସୁରିଆ ପଚାରିଲା– ''ଆମେ ସିନା ଜଣେଇଦବୁ ।

ସେମାନେ ଏ କଥା ଶୁଣିବେ ତ ? କେତେ ମକଦ୍ଦମା ଫଇସଲା ହବାକୁ ବର୍ଷ ବର୍ଷ ଲାଗିଯାଉଚି ।''

ଗଣେଶ କହିଲା- ''ନାଇମ ସୁରିଆ ଭାଇ । ଏସବୁ ଖୁବ୍ କମ୍‌ଦିନେ ଫଏସଲା ହେଇଯିବ । ବରଷଟିଏ ବି ଯିବନି । ହଁ, ଆଉ ଗୋଟିଏ କଥା । ତମ ପାଉଁଜି କଥା- ତୁମେ ଖୁବ୍ ଶୀଘ୍ର ଯାଇ ରତନା ବଣିଆ ନାଁରେ ବିଚାରପୀଠରେ ଜଣାଅ । ସେ ପାନେ ଚାଖିଯାଉ । ଏଥିପାଇଁ ମୁଁ ତୁମକୁ ସାହାଯ୍ୟ କରିବି ।''



ଏହାପରେ ସୁରିଆ ଗଣେଶ ସାଙ୍ଗ ହୋଇ ବିଚାରପୀଠକୁ ଗଲେ । ସେଠି ରତନା ବଣିଆର ଠକାମୀ କଥା ଲେଖିକରି ଜଣାଇଲେ । ଛଅମାସ ପୂରି ନଥାଏ । ବିଚାର ହୋଇଗଲା । ରତନା ବଣିଆ ସୁରିଆକୁ ଅସଲି ରୂପାର ହଳେ ପାଉଁଜି ଦେଲା । ଖାଲି ସେତିକି ନୁହେଁ, ତା' ସହିତ କୋର୍ଟଙ୍କ ରାୟ ଅନୁସାରେ ତାକୁ ଆଉ ଶହେ ଟଙ୍କା ବି ଦେଲା ।

ସୁରିଆ, ଧୋବେଇ ଓ ଗାଁ ଲୋକେ ଗଣେଶ ଉପରେ ଭାରି ଖୁସି ହୋଇଗଲେ । ସମସ୍ତେ ଗଣେଶକୁ ପ୍ରଶଂସା କଲେ ।

— *** —